# ଗୋପୀର ଭାବନା

ଶ୍ରୀ ମାଗୁଣି ଦାଶ



# କଏବୀର ଭବନ୍ତ



  

ଶ୍ରୀ ମାଗୁଣି ଦାଶ

ପ୍ରକାଶିକା:-

ଶ୍ରୀମତୀ ବରଦା କୁମାରୀ ଦାଶ
ପୋ: ଭଞ୍ଜନଗର ( ଗଞ୍ଜାମ )

ପ୍ରଥମ ମୁଦ୍ରଣ
୧୯୬୮/୧୦୦୦

ମୂଲ୍ୟ ଟ 3-00

# ନିଜ କଥା

୧୯୩୯ ମସିହା । ଦ୍ୱିତୀୟ-ମହା ସମର ଆରମ୍ଭ ହୋଇ ଯାଇ ଥାଏ । ଭାରତୀୟ ନେତା ମାନଙ୍କ କଥାକୁ ଉପେକ୍ଷା କରି "ଭାରତ ମଧ୍ୟ ଯୁଦ୍ଧ ପାହରେ ଦୃଢ ତାଳାଟ" ବୋଲି ହଠାତ୍ ଇଂରେଜ ସରକାରଙ୍କ ପ୍ରତିନିଧି ବଡ଼ଲାଟ୍ ଲର୍ଡ଼ ଲିନ୍ ଲିଥିଗୋ ଘୋଷଣା କଲେ । ଏଥିରେ ମହାତ୍ମା ଗାନ୍ଧି ପ୍ରଭୃତି ଭାରତର ନେତୃବୃନ୍ଦ ବିଶେଷ ବିଚଳିତ ଓ ମର୍ମାହତ ହୋଇ ପଡ଼ିଲେ । ଇଂରେଜ ସର-କାରଙ୍କ ସହିତ ଅସହଯୋଗ କରିବା ଛଡ଼ା ଅନ୍ୟ ଉପାୟ ସେମାନେ ସ୍ଥିର କରି ପାରିଲେ ନାହିଁ । ଯୁଦ୍ଧକୁ ସାହାଯ୍ୟ କରିବା ବିରୁଦ୍ଧରେ ପ୍ରଚାର କରି ଆଇନ ଅମାନ୍ୟ କରିବାକୁ ସିଦ୍ଧାନ୍ତ ଗ୍ରହଣ କଲେ ।

ମହାତ୍ମା ଗାନ୍ଧିଙ୍କ ନିର୍ଦ୍ଦେଶ କ୍ରମେ କଂଗ୍ରେସ ଦଳର ମନ୍ତ୍ରୀ ମାନେ ଇସ୍ତଫା ଦେଇ ସତ୍ୟାଗ୍ରହ ସଂଗ୍ରାମରେ ଯୋଗ ଦେବାକୁ ସଜବାଜ ହୋଇ ରହିଲେ । ୧୯୪୦ ମସିହା ପ୍ରାରମ୍ଭରେ ମହାତ୍ମା ଗାନ୍ଧି ଏକ ଅସହଯୋଗ ଆନ୍ଦୋଳନର ସୂତ୍ରପାତ କଲେ । ମହାତ୍ମା ଗାନ୍ଧି ଯେଉଁ କଂଗ୍ରେସ କର୍ମୀ ମାନଙ୍କୁ ସତ୍ୟାଗ୍ରହ କରିବାକୁ ଅନୁମତି ଦେବେ କେବଳ ସେହି କଂଗ୍ରେସ କର୍ମୀ ମାନେ ଯୁଦ୍ଧ ବିରୁଦ୍ଧରେ ଧ୍ୱନି ଦେଇ ସତ୍ୟାଗ୍ରହ କରି ଜେଲ ବରଣ କରିବେ ବୋଲି ସ୍ଥିର ହେଲା ।

ଲେଖକ ମହାତ୍ମା ଗାନ୍ଧୀଙ୍କ ଅନୁମତି ପାଇ ୧୯୪୧ ମସିହା ଜାନୁୟାରୀ ୨୫ ତାରିଖରେ ଗଞ୍ଜାମଜିଲ୍ଲା ଧୂମୁସଟେଷ୍ଟ ପଞ୍ଚଭୁତଠାରେ ସତ୍ୟାଗ୍ରହ କରି ଚାରି ମାସ ଆଶ୍ରମ କାରାଦଣ୍ଡ ବରଣ କରିଥିଲେ । ତାପରେ ୧୯୪୨ ଅଗଷ୍ଟ ୯ ତାରିଖରେ ହୋଇଥିବା 'ଭାରତ ଛାଡ' ଆନ୍ଦୋଳନରେ ଯୋଗ ଦେଇ ଲେଖକଙ୍କୁ ପୁଣି ଛ'ମାସ ଅଶ୍ରମ କାରାଦଣ୍ଡ ଭୋଗ କରିବାକୁ ହୋଇଥିଲା ।

ଏହି ଉଭୟ ଜେଲ ସମୟ ମଧ୍ୟରେ ଯେଉଁ କେତୋଟି କବିତା ଜେଲ ଭିତରେ ରଚିତ ହୋଇଥିଲା । ସେଥିରୁ କେବଳ ବାରଟି କବିତା ଏହି ପୁସ୍ତିକାରେ ସନ୍ନିବେଶିତ ହୋଇ ଅଛି । ଜେଲରୁ କବିତା ଗୁଡ଼ିକ ଆଣିବା କମ୍ ଦୁରୂହ ବ୍ୟାପାର ନୁହେଁ । ଅତ୍ୟନ୍ତ କୌଶଳ ଓ ସତର୍କତାର ସହିତ ଆଣିଥିବା କବିତା ଗୁଡ଼ିକ ମଧ୍ୟରୁ ଅଧିକାଂଶ ଆଜି ଦୁଷ୍ପ୍ରାପ୍ୟ ।

ମୋର ଯେଉଁ ବନ୍ଧୁ ମାନେ କବିତାଗୁଡ଼ିକୁ ବହି ଆକାରରେ ପ୍ରକାଶ କରିବା ପାଇଁ ମତେ ବାରଂବାର ଅନୁରୋଧ କରି ଉତ୍ସାହିତ କରିଛନ୍ତି ସେମାନଙ୍କ ନିକଟରେ ମୁଁ ଚିର କୃତଜ୍ଞ ।

ବର୍ତ୍ତମାନ ଦେଶ ସ୍ୱାଧୀନ ହୋଇଛି । କବିତା ଗୁଡ଼ିକ ଯେଉଁ ସମୟରେ ରଚିତ ହୋଇଥିଲା ସେ ସମୟ, ଅବସ୍ଥା ଓ ଭାବର ବିଶେଷ ପରିବର୍ତ୍ତନ ହୋଇଛି । ଅତଏବ ସେହି ସମୟକୁ ଲକ୍ଷ୍ୟ ରଖି କବିତା ଗୁଡ଼ିକ ପାଠ କରିବା ପାଇଁ ପାଠକମାନଙ୍କୁ ଅନୁରୋଧ ।

ବିନୀତ

— ଲେଖକ —

## ଉତ୍ସର୍ଗ

ପୂଜନୀୟ ପିତା !

ତୁମର ଅଧମ ସନ୍ତାନକୁ କେଣି ପାଠ ପଢ଼ାଇ ପାରିଲ ନାହିଁ ବୋଲି ସବୁବେଳେ ତୁମ ମନରୁ ଦୁଃଖ ଦେଖିବାକୁ ପାଉଥିଲି । ମୁଁ ଯେତେବେଳେ ସାମୟିକ ଛୁଟି ନେଇ ଘରକୁ ଯାଏ ତୁମର ଅନ୍ତର ସ୍ନେହ ଓ ବାତ୍ସଲ୍ୟ ମମତାରେ ପ୍ରଶଜଠେ, ଗର୍ବ ଓ ଆନନ୍ଦର ଆତିଶଯ୍ୟରେ ମୋର ପ୍ରଶଂସା କରି ଲୋକଙ୍କୁ କହୁଥିବା ମୁଁ ନିଜେ ଶୁଣିଛି ଏବଂ ନିଜକୁ ଗୌରବାନ୍ୱିତ ମନେକରି ଅତ୍ୟନ୍ତ ଆତ୍ମ ସନ୍ତୋଷ ଲାଭକରିଛି ।

ମୋର ବଡ ଇଚ୍ଛାଥିଲା ଏହି ଗ୍ରନ୍ଥଖଣ୍ଡିକୁ ତୁମର ହସ୍ତରେ ଅର୍ପଣ କରି ମୋର ଜେଲ ଜୀବନର ସାର୍ଥକତା ଅନୁଭବ କରନ୍ତି କିନ୍ତୁ ଏହା ପ୍ରକାଶ ପାଇବା ପୂର୍ବରୁ ତୁମେ ଚାଲିଯାଇଛ ।

ସେହି ସ୍ୱର୍ଗ ଧାମରେ ଥାଇ ଏ ଗ୍ରନ୍ଥକୁ ଗ୍ରହଣ କଲେ ମୁଁ ନିଜକୁ କୃତାର୍ଥ ମନେ କରିବି ।

ଇତି

ତୁମର ଅଧମ ପୁତ୍ର

## ସୂଚୀପତ୍ର

# ଜଣାଣ



କଞ୍ଜ ନୟନ ପ୍ରଭୁ କରୁଣାକର
କୃପା ଜଳଧି ପ୍ରଭୁ ବନ୍ଦୁଏ ସାରଁ ।
କଟେଛ କୃପା ପ୍ରଭୁ ଫମ୍ପାରେ କେତେ
କାହିଁ ନ ଶୁଣୁଛ ମୋ ଡାକ ସତେ ॥
କଷ୍ଟ ଦେଉଛ ପ୍ରଭୁ ଦୟା ସାଗର,
କେତେ କ୍ଲେଶ ସହିବ ନର ମୁଁ ଛାର ॥
ଜାନ୍ଦୁଟ୍ଟି ବଜଲରେ ଦୀନ ବାନ୍ଧବ,
କେବେ ମତେ ପ୍ରଭୁ ଏ ଭବୁ ତାରବ ॥
ଜଣଭକ୍ତ ଉଦ୍ଧବ, ଧ୍ରୁବ, ପ୍ରହ୍ଲାଦ,
କ୍ଲେଶରୁ ଛଡ଼ଗଲେ କରୁଣ୍ଟି ବାଦ, ॥
କମଳାପତ ଅରେ ଦଅନ୍ତୁ କହ,
କାପର ଏ ସଂସାରୁ ପାଇବ ତାହ ॥
କୈବର୍ତ୍ତକୁ ବଡ଼ାଇ ଥିଲ ଫୟୁର,
କୌଶଲ୍ୟା ସୁତ ପ୍ରଭୁ ରଖ ମୋ ଟିର ॥
କଟଥିଲ ଉଦ୍ଧାର ଅହଲ୍ୟା ସତୀ
କଲେ ମତେ ଦୟା କି ହେବହେ କ୍ଷତି ? ॥
କିଛି ନ ଜାଣେ ପ୍ରଭୁ ମୁ ତୁଚ୍ଛ ମୂର୍ଖ,
ଭଜନ୍ତୁକ ଭରୁଛ ମନେ କପାଇଁ ॥
ଜାଗଟାରେ ପଡ଼ି ମୁଁ ଡାକୁଛି ନାଥ,
କର ପୂରଣ ପ୍ରଭୁ ମୋ ମନୋରଥ ॥
କଳା ଡୋଳା ହେ ପ୍ରଭୁ ! ଯାଉଛି ସବୁ,
କହେ ଦ୍ୱିଜ ମାଗୁଣି ଦେନ ତୁହାର ॥

— ୦ —

## ଭଜନ



ଖଗପତି ହେ ନାଥ ସୁଖାସୁ ଜର,
ଖଳ ଦୂରନ୍ତ ଅଟେ ଦୁଷ୍ଟ ମୋହର ॥
ଖଟି ଖଟି ପଥରେ କାଠ ହେଲଣି,
ଖାଲି କି ସତ ଦେଖ ହେ କମ୍ବୁପାଣି ॥
ଖେଣ୍ଡା ଦାଢ଼ରେ ପ୍ରଭୁ ଚଲଇ ଦେଖ,
ଖୈନ୍ତି କି ନାହିଁ ମୁଁ ଭର ପରଖ ॥
ଖବର ଗୁଣଥଡ଼େ ହେଲଣି ଶୁନା,
ଖରବ ହୋଇ ହାନ୍ତ ପାଛେ ଚନ୍ଦ୍ରମା ॥
ଖଣ୍ଡ ଗଲଣି ଯମ ଦୂତଙ୍କ ସର,
ଖୋଜୁ ଅଛନ୍ତି ମତେ ନେବାକୁ ଧରି ॥
ଖିଆଲ ନଭାବ ମୋ ପାପ ଖଣ୍ଡନ,
ଖୀନ ପଲକେ ଶୋଇ କର ମୋଚନ ॥
ଖାତକୁ ପେଲିଦିଅ ନଛୁବା ମନ୍ଦ,
ଖଚୁଆ ବୋଲି ହଦ ହେବ ପଦଦେ ॥
ଖାଇରି ବୋଲି ଖାଇଦେବ କୁହର,
ଖିତିରେ ପ୍ରଭୁ ନିନ୍ଦା ହେବ ଅପାର ॥
ଷେମ ଦୂଷିତ ମାଗେ ମାଗୁଣି ଧୀର,
ଷମା ସାଗର, ଷମ ଦୋଷ ମୋହର ।

— ○ —

## ପ୍ରାର୍ଥନା



ଦୀନ ବାନ୍ଧବହେ ଦୟାକର କଞ୍ଚଟରେ !
ଦଶରଥ ମନ୍ଦିରେ ପଡ଼ମୁଁ ଡ଼ାକୁଛୁ କୃପା ଦୃଷ୍ଟି ପଡ଼ୁ ବାରେ ॥
ଦୁଷ୍ଟଙ୍କୁ ନାଶ ସନ୍ତଙ୍କୁ ପାଳିବା ନାଥ ଅଟଇ ତୁମ୍ଭର ।
ଦାନବ ବନାଶି ରଖିଥିଲ ପରା ତ୍ରେତାଯୁଗରେ ଋଷିପୁର ।
ଦ୍ରୌପଦୀ ଲଜ୍ଜା ନେଉଥିଲ ଦୁର୍ଯ୍ୟୋଧନ କ୍ରନ୍ଦ ସ୍ୱରଭିଲେ ।
ଦୟାନିଧି ତାଙ୍କୁ ବସ୍ତ୍ର ଦେଇ ପରା ଲଜ୍ଜା ନିବାରିଲ ହେଲେ ॥
ଦୁର୍ଦ୍ଦାନ୍ତ ବ୍ୟାଧକୁ ମାରି ଉଦ୍ଧରିଲ ଏଣ୍ଡୀକି ହେ ଦୟାନିଧି ।
ଦ୍ୱିଜ ଡ଼ାକ ଶୁଣି କଣ୍ଠକୁ ରଖିଲ ଭକ୍ତ ଦ୍ୱାରୀ ନନ୍ଦ ବନ୍ଧି ॥
ଦୀନ ହୀନ ବେଶେ ପଡ଼ମୁଁ ଡ଼ାକୁଛୁ ଆହେ ପ୍ରଭୁ ଜଗନ୍ନାଥ ।
ଦୁଃଖୀ ଦୁଃଖ ନବେ ଫେଡ଼ କୃପାସିନ୍ଧୁ କଥା ରଖ ଏ ସମୟ ନ ॥
ଦଇବ ବାମରୁ କିବା ପୂର୍ବଫଳୁ ଏ ଦଶା ଭୋଗୁଛୁ ଆଜି ;
ଦୟାକର ଦୀନ ବାନ୍ଧବ ହେ ଥରେ ଦାନ ମାଗୁଣି ମାଗୁଛି ॥

— ୦ —

## ନବୀନ ନିଶାଣ



ଜାଗ ଜାଗ ଅଜ୍ଞ ଉତ୍କଳ ସନ୍ତାନ,
ହେବନ ମନେ ମନେ ସୁ ଚ୍ଛନ ସନ୍ଧାନ ॥
ପୂର୍ବେ ବସିଥିଲେ ପୁରୁଷ ବ୍ୟାଘ୍ରେ,
ଶୌର୍ଯ୍ୟ ବୀର୍ଯ୍ୟ ବୀରଦର୍ପେ ହରକ୍ଷେ ।
ଗୋଲାଗୁଳି ବାରୁଦର କାରବାର,
କୁନ୍ତ, ତଲୁଆର ଢ଼ାଲର ବେଭାର ॥

ଆଜ ନାହିଁ ବଳ ଧରିବାକୁ ହାତ,
ହେବ କମର ବା ସଇନ ପଦାତ ॥
ଖାପ ହେବାକୁ ନାହିଁ ଯାର ବଳ,
ଜାଣିବ କପର ଯୁଦ୍ଧର କୌଶଳ ॥
ଗଙ୍ଗାଠାରୁ ଗୋଦାବରୀ ଯାଏଁ ଯାର,
ଜୈତ ଧ୍ୱଜା ଉଡୁଥିଲ ଘର ଘର ॥
ଉଡୁନାହିଁ ଅଜ ସେ ଜୟ ଧ୍ୱଜା,
ବାଜୁନାହିଁ ଆଜ ରଣଭେରୀ ବାଜା ॥
ନାହାନ୍ତି ଅନଙ୍ଗ ପ୍ରତାପ ମୁକୁନ୍ଦ,
ନରସିଂହ, ପୁରୁଷୋତ୍ତମ, କପିଳେନ୍ଦ୍ର ॥
ଗୃଲଯାଇଛନ୍ତି ଉପଇନ୍ଦ୍ର ଭଞ୍ଜ,
କାବ୍ୟ ଅଳଂକାରେ ନାହିଁ ଯାର ସଞ୍ଜ ॥
ଯା ଲଗି ଓଡ଼ିଆ ଓଡ଼ିଆ ବୋଲାଏ,
ରହିଅଛି ଟେକ ଅଜ ସବୁଠାଏଁ ॥
ବଳଦେବ, ଅଭିମନ୍ୟୁ, ଜଗନ୍ନାଥ,
ଗଙ୍ଗାଧର, ଦୀନକୃଷ୍ଣ, ରାଧାନାଥ ॥
ଭୂମିଗଲେ ସୁଦ୍ଧା କାଏବେ ହୃଦୟ,
ଯାଲଗି ଓଡ଼ିଆ ଜାତର ଗୌରବ ॥
ଯେ ଓଡ଼ିଆ ଜାତି କାରିଗରୀ କର,
କୋଣାର୍କ, ଭୁବନେଶ୍ୱର ଅଜ ପୁରୀ ॥
ମନ୍ଦିର ନିର୍ମାଣି ରଖିଛନ୍ତି ଟେକ,
ଯା ଦେଖିଲେ ଅଜ ଦମଦମ ବୁକ ॥

ସେ ଓଡ଼ିଆ ଆଜି ପର ମୁଖାପେକ୍ଷୀ,
ଏହା କେ ସମ୍ଭବ ସ୍ୱ ଚକ୍ଷୁରେ ଦେଖି ॥
ପେଟ ପୂରା ଟୋକ ଚାଉଳେ ଓଳିଏ,
ଦୁଇ ଦିନ ଯାଏଁ ଅନ୍ନ ସେ ନପାଏ ॥
ଗଣି ହେଉଅଛି ଶରୀରର ହାଡ଼ ,
ଚାଲିବାକୁ ପାଦେ ନବାହାରେ ଗୋଡ଼ ॥
ପିନ୍ଧିବାକୁ ଖଣ୍ଡେ ନପାଏ ବସନ ,
ଷୋଡ଼ଶୀକନ୍ୟାର ନଫୁଟେ ଯୌବନ ॥
ଗଣ୍ଡାଏ ଗଣ୍ଡାକୁ ଦୋଡ଼ାଏ ସେ ଲଙ୍କା,
ଭାବିଲେ ଲଙ୍କାରେ ଥରଯାଏ ମଙ୍କା ॥
ସଉଭାଗ୍ୟ ସମ୍ପଦର ଗନ୍ତାଘର,
ଚୋରି କରି ନେଇଗଲା କେଉଁ ଚୋର ॥
(ଅଜ) ସେହି ସ୍ୱର୍ଣ୍ଣପ୍ରସୂ ଉତ୍କଳକୁ ଆଜି,
ଭଗବାଣ୍ଡି ସବେ ନେଲେ କରି ପାଜି ॥
ହରାଇଛି ପୂର୍ବ କୀର୍ତ୍ତି ଓଡ଼ିଆ ପୁଅ,
ନୀରବେ ଚଡ଼ାଏ ସେଥିପାଇଁ ଲୁହ ॥
କେବେ ହେବ ଭାଗ୍ୟ ଉଦୟ ତାହାର,
କେବେ ଯିବ ଦୁଃଖ ଓଡ଼ିଆ ପୁଅର ॥
ଅନ୍ତରୁ ଡାକିଲେ ନୀଳାଚଳନାଥ,
ଦୁଃଖୀ ଦୁଃଖ ହର୍ତ୍ତା ହୁଟିବେ ଆରତ ॥
ଯେଉଁ ପ୍ରଭୁ ନିଜ ଦେଶ ରଖା ପାଇଁ,
ଯାଇଥିଲେ କାଂଚିଯୁଦ୍ଧେ ସୈନ୍ୟହୋଇ ॥

ଯେ ଦ୍ରବ୍ୟ ଅତନ୍ତ୍ର ପତିତ ପାବନ,
ଚୈତନ୍ୟ ସମସ୍ତ ଜଗତଙ୍କ ମନ ।।
ନିଷ୍ଟପ୍ତ ଧ୍ୱଂଶବ ଉତ୍କଳ ଦୁର୍ଦ୍ଦଶା,
ଏଥିପାଇଁ କେହି ନାହିଁ ଧରବଅ ଆଶା

— ○ —

## ସ୍ୱାଧୀନ ପଥେ



ଲଗିଛିରେ ଅତି ଭୀଷଣ ସଂଗ୍ରାମ,
ଭୂଶାୟୀ ହେଲେଣି ଅପାର ସଇନ,
ସମକକ୍ଷ ଯୋଦ୍ଧା ଇଂରେଜୀ ଜର୍ମାନୀ,
ଦୁହେଁ ସାଜିଛନ୍ତି ଅପାର ସଇନ ।।
କେତେ ଧନ୍ୟପାତ କର ଲେଣି ନୂଆ
କେପାରବ କଷ୍ଟି ଓସ ସବୁର ନାଆଁ ।।
ଟର୍ପେଡୋ, ମାଇନ, ବୋମା, ଏରୋପ୍ଲେନ ;
ପାବଚ୍ୟୁଟ୍, ଟ୍ୟାଙ୍କ କେତେ ଏୟାରଗନ୍ ।।
ଖଞ୍ଜିନ୍ତି ଜର୍ମାନୀ ଇଂରେଜଙ୍କ ପାଇଁ,
ଇଂରାଜ ଗୁଞ୍ଜନ୍ତି ଜର୍ମାନୀଙ୍କୁ ଚାହିଁ ।।
କେତେ କେତେ କୋଠା ହୋଇଲାଣି ଧ୍ୱଂସ,
କେତେ ବଡ଼ ବଡ଼ ଗୃହପୁର ଉଦ୍ୱାସ ।।
କେତେଯେ ସହର ହେଲାଣି ପାଉଁଶ ।।
ବୋମାପଡ଼ି ନାଅଁ ଲଗି ସବୁ ଶେଷ ।।

ଅଦ୍ଭୁତ କେତେକୋଟି ରାଜ୍ୟ ତନ୍ତ୍ର ଲାଗି,
ନିଜ ଜନ୍ମ ଭୂମି ପାଇଁ ସର୍ବେ ତ୍ୟାଗୀ ॥
କେତେ ଦେଶ ବାସୀ ହେଲେଣିସେ ବଳି,
ଶତ୍ରୁର ଅଘାତେ ସର୍ବେ ହୋଇ ଦଳି ॥
ପ୍ରାଣ ଚଞ୍ଚଳରେ କେ ପଳାଏ ଧାଇଁ,
କେ ଆସି ଶତ୍ରୁର ଗୋଡ଼ତଳେ ଶୋଇ ॥
କରୁଛନ୍ତି ଭିକ୍ଷା ଜୀବନ ନିଜର,
କ୍ଷମା ମାଗୁଛନ୍ତି ନୀଚ ଗାଇଆର ॥
ଶତ୍ରୁଙ୍କର ତାଙ୍କୁ ଜବତ ପେଷନ୍ତି,
ଲେଖାଇ ନେଉଛନ୍ତି ଚୁକ୍ତିନାମା ଅଣି ॥
ଏହି ପରି କେତେ କରିଲ ସଂଗ୍ରାମ,
ହେଉଛନ୍ତି ଅଛି ନାହିଁ ତା ବିରାମ ॥
ଲାଗିଛନ୍ତି ସର୍ବେ ନିଜ ରାଜ୍ୟ ଲାଗି,
ଭୂଶାୟୀ ହୁଅନ୍ତି ଶତ ଶତ ଆଜି ॥
ରାଜ୍ୟ ଲାଗି ହେବ ଶରୀର ନିପାତ,
ଅବା ଜୟୀ ହେଲେ ଜଗତେ ବିଖ୍ୟାତ ॥
କି ସଂଗ୍ରାମ ଆଜି ଲାଗିଛି ସେଠାରେ,
ଶୁଣିଲେ ଶରୀର ଥରଇ ଭୟରେ ॥
ଏ ସମୟେ ଦେଖ ଭାରତ ଦୁର୍ଦ୍ଦଶା,
ସ୍ୱର୍ଣ୍ଣମୟୀ ଦେଶ ହେଉଛି କି ଦଶା ॥
ଲକ୍ଷ ଲକ୍ଷ ପୁଅ ପେଟ ବଞ୍ଚିଲାଗି,
ଛାଡ଼ି ଦାରା ସୁତ ଆଜି ବିଦେଶରେ ॥

ନ ପାନ୍ତି ଦରେବଲ ପେଟପୁରା ଡୋକ,
କାହିଁ ଭରତର ସୌଭାଗ୍ୟ ବଢେକ ॥
କିସ ଥିଲ ଏହି ଗଳିଙ୍କ ପୁହୁଟେ,
ଭବଲେ ହୃଦସ୍ଥ ମାତ୍ତଜଠେ ଗଟେ ।

କିନ୍ତୁ କାହିଁ ଆଜ କି ଦେଖୁଛ ତାହା,
ଦ୍ଵିପଶ୍ୱିତ ଫଳ ଫଳିଚଲ ଅହା ॥
ଲକ୍ଷ୍ମୀପୁର ବୈକୁଣ୍ଠ ଚିରଥିଲ,
ବିଦେଶୀ ଶାସନ ଖାଲି କରିଦେଲ ॥

ଘେରୁଛନ୍ତି ଆଜ ଭାରତ ସନ୍ତାନ,
ଦୁଖ କଷ୍ଟେ ପଡ଼ି ହୋଇ ପରାଧୀନ ॥
କାହିଁ ପାଇଁହେଲା ଏ ପରିବର୍ତ୍ତନ,
ଭାବିଲେ ଚୌଦଗ ଦିଶିଯାଏ ଶୂନ୍ୟ ॥

କି ସମୃଦ୍ଧି ଶାଳୀ ଥିଲ ଏ ଭାରତ,
ମାରୁଥିଲ କାର ଦର୍ପେ ଅଟେରନ୍ତ ॥
ପେଟକୁ ନପାନ୍ତି ଏବେ ଟିକ୍ରେ ଦାନା ।
ଲଜ୍ଜା ଢାଙ୍କିବାକୁ ନାହିଁ ଖଣ୍ଡେ ଜନା ॥

ଏପରି ଘଟୁଛି ଅପାର ଅପାର,
ଲେଖିଲେ ହୋଇବ ଗ୍ରନ୍ଥ ପାରାବାର ॥
ଫେରାଇବା ପାଇଁ ପୂର୍ବ ସମୃଦ୍ଧି
ଲାଗିଛନ୍ତି ଏବେ ଗାନ୍ଧି ମହାତ୍ମାଜୀ ॥

ଗତ ମହାଯୁଦ୍ଧେ ସର୍କାର ତାହାଙ୍କୁ,
ଡାକି ପଠାଇଲେ ସହଯୋଗିବାକୁ ॥
କହିଲେ ମହାତ୍ମା ଦେଶର ଦୁର୍ଦ୍ଦଶା,
ଶୁଣି ସରକାର ଛାଡ଼ିଲେ ଭରସା ॥

କହୁଥିଲେ ଏଥର କର ସହଯୋଗ,
ଯୁଦ୍ଧେ ଜୟୀ ହେଲେ ଦେବୁ ରାଜ୍ୟ ଭାଗ ॥
ରକ୍ତ ମାଂସ ଧନ ଭାରତ ସନ୍ତାନେ,
ଗାନ୍ଧିଙ୍କ ଆଦେଶେ ସମର ଅଙ୍ଗଣେ ॥
ଢାଳିଲେ ସରବେ ଅନ୍ନ ବସ୍ତ୍ର ଧନ,
ଜୟୀ ହେଲେ ମାତ୍ର ସର୍କାର ଅଭଗ ॥
ଯୁଦ୍ଧ ଶେଷ ହୋଇ ଶାନ୍ତି ଧାରିଲାରୁ,
ଗାନ୍ଧି ଯାଇ ନିଜ ରାଜ୍ୟ ମାଗିବାରୁ ॥
ନାସ୍ତି ବାଣୀ ପରିହାସ କରି ରାଜା,
ଘଉଡ଼ାଇ ଦେଲେ ଥଟ୍ଟା କରି ଯା ଯା ॥

ହୋଇଲା ଆରମ୍ଭ ସତ୍ୟାଗ୍ରହ ଯୁଦ୍ଧ,
ଲକ୍ଷ ଲକ୍ଷ ଲୋକ ହେଲେ କାରାରୁଦ୍ଧ ॥

ଜୀବନକୁ ସବେ ଦେଇ ଜଳାଞ୍ଜଳି,
ଗୁଳିଲେ ଭାରକୁ ସବେ ହୋଇ ମେଳି ॥

କେତେକ ଭାଇ ଦେଶ ପାଇଁ ହେଲେ ବଳି,
ଦୁଃଖ କଷ୍ଟ ନାନା ଯନ୍ତ୍ରଣା ସମ୍ଭାଳି ॥
ଜାଲିଆନା ବାଗ୍, ପଞ୍ଜାବ, ଗଡ଼ଜାତ୍,
ହତ୍ୟାକାଣ୍ଡ କରି ଶୋଷିଲେ ରକତ ॥
କେତେ ଦିନ ପରେ ଶାନ୍ତ କରି ସବୁ,
ସ୍ୱାଧୀନ ଶାସନ ଦେଲେ ହେଟିଭାକୁ ॥
ମନ୍ତ୍ରୀଗଡ଼ା ହେଲା ପ୍ରତି ପ୍ରଦେଶରେ,
କଂଗ୍ରେସ ଲାଗିଲା ଦେଶ ଉପକାରେ ॥

ସେ ମନ୍ତ୍ରୀର ପାଇଁ ଥିଲା ଏକ କଥା,
ହଁ, ନାହିଁ ଥିଲା ସର୍କାରଙ୍କ ମଥା ॥
ଯଦି ନାସ୍ତିକର ବଦଳେ ସର୍କାର,
ବଦଳିବ ନୋହିବ ମନ୍ତ୍ରୀଙ୍କ କଥାର ॥
କରିବେ ସର୍କାର ଯଦି ଏକ କଥା,
ମନ୍ତ୍ରୀଙ୍କର ନାହିଁ ହୋଇବ ଅନ୍ୟଥା ॥
ସରକାର ନେବେ ସେ ସବୁ ଚଳାଇ,
ମନ୍ତ୍ରୀମାନେ କେବେ ନପିବେ ଚଳାଇ ॥
ଏହିପରି କେତେ ଦିନ ବିତିଗଲା,
ପୋଲଣ୍ଡ-ଜର୍ମାନୀ ଯୁଦ୍ଧ ଆସିହେଲା ॥
ଇଂରେଜ ସର୍କାର ପଶିଲେ ଯୁଦ୍ଧରେ.
ଘୋଷଣା କରିଲେ ଭାରତ ପକ୍ଷରେ ॥
ଜର୍ମାନୀ ବିରୁଦ୍ଧେ ଭାରତ ଲଢ଼ିବ,
ଦରକାର ହେଲେ ନିଜ ପ୍ରାଣ ଦେବ ॥
ଏ ଘୋଷଣା ଶୁଣି କେତେ ଭାଉ-ଲୋକ,
ଚାରି ଜାତି ସବେ ହେଲେ ଅତି ବ୍ୟସ୍ତ ॥
ଗଲେ ମହାତ୍ମାଜୀ ଇଂରେଜ ପାଖକୁ,
ପଚାରିଲେ କର୍ତ୍ତା କଲ ଘୋଷଣାକୁ ॥
ଯଦି ଦେବ ଅମ୍ଭ ସ୍ୱାଧୀନ ଅମ୍ଭଙ୍କୁ,
ପାରିବୁ ଯୁଦ୍ଧରେ ତୁମ୍ଭ ପାଇଁ ଲଢ଼ୁ ॥
କହିଲେ ସର୍କାର ହୁଅ ଏକପ୍ରାଣ,
ହିନ୍ଦୁ, ମୁସଲମାନ ଧର ଏକ ବାଣ

ଦେବୁ ତୁମ୍ଭ ରାଜ୍ୟ ତୁମ୍ଭେ ବୁଝିବାକୁ,
ନାହିଁ ଆମ୍ଭ ଚନ୍ତା ତୁମ୍ଭଙ୍କୁ ଦେବାକୁ ।
ଲଟାଇଲେ ନାଟ ଧରି ଇଣ୍ଡିଆଙ୍କୁ,
ଧଂସଗ କରିବା ପାଇଁ ଭାରତକୁ ॥
ନ ଶୁଣିଲେ କିଛି ମହାତ୍ମାଙ୍କ କଥା,
ଇଂରେଜ କପଟ; ପାତ ନେଲେ ମଥା ॥
ଆଦେଶିଲେ ଗାନ୍ଧି କଂଗ୍ରେସ ମନ୍ତ୍ରୀଙ୍କୁ
ଗୁଡ଼ ଆସିବାକୁ ମନ୍ତ୍ରୀସ୍ୱ ଗାଦିକୁ ॥
ହେଲ ସତ୍ୟାଗ୍ରହ ଆରମ୍ଭ ଭାରତେ,
ପଡ଼ିଗଲ ହୁରି ଏ ସାରା ଜଗତେ ॥
ଲକ୍ଷ ଲକ୍ଷ ଅଜ ପଶିଲେଣି ରଣେ,
ଝୁଞ୍ଜିବେ ଆତୁରି ସମର ଅଙ୍ଗଣେ ॥
ଅହିଂସା ମନ୍ତ୍ରକୁ ସର୍ବେ କରି ସାର,
ଝୁଞ୍ଜିଛନ୍ତି ଆଜ ଲକ୍ଷ ଲକ୍ଷ ବୀର ॥
ଦେଶ ପାଇଁ ଧନ ପାଇଁ ହେବେ ବଳି,
ତଡ଼ିବେ ଦେଶରୁ ବିଦେଶୀ-ଅରିକି ॥
ରକ୍ତ ନଦୀ ଯାଉ ଭାରତରେ ବହି,
ମାଳ ମାଳ ମୁଣ୍ଡ ଗଡ଼ୁ ସାରା ମହୀ ॥
ତଥାପି ନଦେବୁ ପଛ ଦୁଖ୍ୟା ଆମ୍ଭେ,
ଲଢ଼ିବୁ ସ୍ୱରାଜ୍ୟ ସାଧନେ ସଦମ୍ଭେ ॥
ମାତଜାଠ ସର୍ବ ଭାରତ ସନ୍ତାନ,
ହେଲ କାହେ ସର୍ବେ ବିବେକ ବିହୀନ ॥

ବୀରରକ୍ତ ଉଠୁ ନାହିଁ କଟେହ ତାତ,
ଅନାହାରେ ସବୁ ଲଭନ୍ତିକି ଶାନ୍ତ ॥
ପୂର୍ବ ଠେକା ବଳ ସ୍ମର ମନେ ମନେ,
ହୁଅ ଅବତୀର୍ଣ୍ଣ ସମର ଅଙ୍ଗଣେ ॥
ଲୋଡ଼ା ନାହିଁ ଏଥି ହାନ୍ତ-ହତିଆର,
ଗୋଲା ଗୁଳି ବାରୁଦର କାରବାର ॥
କର ସତ୍ୟ, ଶାନ୍ତ ମନ୍ତ୍ର ଉଚ୍ଚାରଣ,
କଙ୍କାଳ ଶରୀରେ ହୁଅ ଅବତୀର୍ଣ୍ଣ ॥
ଦିଅ ବଳି ସର୍ବେ ଜନ୍ମ ଭୂମି ପାଇଁ,
ମାତୃଭୂମି ଜୟ ଆନନ୍ଦରେ ଗାଇ ॥
ହୋଇବାରେ ସର୍ବେ ନିଶ୍ଚୟ ସ୍ୱାଧୀନ,
ଘୁଂଚିବ ଏ ଦେଶୁ ବିଦେଶୀ ଶାସନ ॥
ଭାରତମାତା ପଦେ ଜଣାଅ ଗୁହାର,
ମନସ୍କାମ ପୂର୍ଣ୍ଣ ହୋଇବ ଅମୃତ ॥
ବୋଲ ବୋଲ ଭାଇ ସର୍ବେ ଭାରତମାତା,
ଜୟ - ଜୟ - ଜୟ ଭାରତମାତା
ବନ୍ଦେ ମାତରଂ

— ୮ —

## ଏଇ ମୋ ଓଡ଼ିଆ ଭାଇ

ଏଇମୋ ଓଡ଼ିଆ ଭାଇ
ଯୁଦ୍ଧରେ ନାଚୁଛି ଏ ପାଖ ସେ ପାଖ
କି ଆନନ୍ଦେ ମତ୍ତ ହୋଇ -୦-

ବାଜଗଲେ କାନେ ସୁଦ୍ଧବାଦ୍ୟ ବାଣୀ
ଦେଖିଲେ ଦୂରବୁ କୌଣ ଓଡ୍ର ଧ୍ୱଜା
ଧାଏଁ ବେଡେ ବେଗେ ଅଷିପଲ୍ଲବରେ
ଯୁଦ୍ଧରେ ପଶିବା ପାଇଁ —୧

ଦେବ ଅଙ୍ଗପ୍ରାଣ ଜନ୍ମଭୂମିପାଇଁ
ଅବା ଜୟୀ ନହଲେ ଦେଗିବ ସେ ମନ୍ତ୍ରୀ
ବଇଶ ସହାର କଥା ରଖିନ୍ଦେବ
କାଲେ କାଲେ ସାଉ ମନ୍ତ୍ରୀ —୨

ପଡଗଲେ ମନେ ପୂର୍ବ ବିଭବ,
ସ୍ୱଦେଶ ଅତ୍ୟାଗ୍ରରେ ଦେଇଛୁ ସରବ
ମହତ ରଖିବ କାଲ କାଲ ଯାଏଁ
ନିଜର ପରାଣ ଦେଇ —୩

ଜାଗିଛୁ ପରାଣେ ଅପୂର୍ବ ପୁଲକ,
" ଶତ୍ରୁ ସଂହାରବା ବୀରର ଆଲୋକ "
ଏ ନଂଡ ପାଇକର ସମର ଅଙ୍ଗଣେ
ନୀଳାଚଳ ନାଥ ଧାମ୍ରି —୪

— ୦ —

## ମୋର ବ୍ୟକ୍ତିଗତ ସତ୍ୟାଗ୍ରହ

ଲଗିଛୁ ଭାରତେ ମୁକ୍ତି ପାଇଁ ଆଜି
ଶାନ୍ତି ସତ୍ୟାଗ୍ରହ ଯୁଦ୍ଧ ॥

ଅହିଂସା ଏହାର ମୂଳମନ୍ତ୍ର ଅଟେ
ଯେ କରିବ ପ୍ରତିରୋଧ ॥
ଦେବେ କେତେ ବୀର ଏହି ରଣେ ପ୍ରାଣ
ସ୍ମର ଭାରତ-ଜନନୀ ॥
ସ୍ୱାଧୀନତା ପାଇଁ ଏ ଜୀବନ ଦାନ
ଦେଖୁ ଏ ସାର୍ବ ଅବନୀ ॥
କେତେଦିନ ଆଉ ପରାଧୀନ ହୋଇ
ପଡ଼ିରହିଥିବା ଭାରେ ।
ବୀର ପ୍ରସବିନୀ ଭାରତ ମାତାର
ପରକ୍ରମୀ ସୁତ ହୋଇ ॥
ଅତୀତ ଗୌରବ ଗଲାଣିତ ଭୁଲି
(ଅଛି) ଜର୍ପୁର ବନ୍ଧନ କରା ।
ଜନାଖଣ୍ଡି କର୍ପା ଛୁଡ଼ଦେବା ହଇ
( ହେବ ) ଜାତିର ଗୌରବ ବାନା ॥
ଲକ୍ଷ ଲକ୍ଷ ଅଙ୍ଗ ଡେଇଁଲେଣି ରଣେ
ଘର ଦ୍ୱାର ସବୁ ଛାଡ଼ି ॥
ଡେଇଁଛି ମୁଁ ମଧ୍ୟ ଏସ ସ୍ୱାଧୀନ ଯୁଦ୍ଧେ
ସ୍ୱାଧୀନତା ମୋତେ ଲୋଡ଼ ।
ଅସ ଆସ ସବେ ଭାଇ ଭଉଣିଏ
ବୀରଦର୍ପେ ମାତି ଗବେ ॥
ଡେଇଁବା ଅନଳେ ସ୍ୱାଧୀନତା ପାଇଁ
ଧରି ଧରି ହୋଇ ସବେ ।

ସେ ଦିନ ଆସିଲ    ସମର ଅଗକୁ
ବିଦାୟ ତୁମଠୁଁ ନେଇ ॥
ବିଜୟ ଟୀକା ଦେ    ଦେଇଥିଲ ସବି
ସହାନୁଭୂତି ଦେଖାଇ ॥
ଦ୍ୱାରେ ଦ୍ୱାରେ ସବ    ପୂର୍ଣ୍ଣକୁମ୍ଭ ଥୋଇ
ଦିଅ ପ୍ରଦୀପ ଜଳାଇ ॥
ମା ଭଉଣୀଏ    ହୁଳ ହୁଳି ଦେଇ
ଗ୍ରାମକୁ ଦେଲ କମ୍ପାଇ ॥
ଶଙ୍ଖ ବାଜୁଥିଲ,    ବାଇଦ ବାଜିଲ
ଗାଁ ବୁଲାଇଲ ମତେ ॥
ଶହ ଶହ କରି    ପୁଷ୍ପମାଲ୍ୟ କପାଁ
ମଣ୍ଡି ଦେଇଥିଲ ମତେ ॥
ବାଇଦ ବାଜିଲ    ବେଳେ ଭାବୁଥାଏ
ରଣବାଦ୍ୟ ଏ ଅଟଇ ॥
ଅସ୍ତ୍ର ଶସ୍ତ୍ର ଯୁଦ୍ଧ    ସେ ସିନା ଅଟଇ
ଶାନ୍ତି ଯୁଦ୍ଧ ଏ ଅଟଇ ॥
ଲୋଡ଼ା ନାହିଁ    ଏଥିପାଇଁ ଧନ ବଳ
କିବା ରଥ, ଘୋଡ଼ା, ହାତୀ ॥
ସମସ୍ତ ପଡ଼ିଲେ    ଦରକାର ହେବ
ଫାଡିବାକୁ ନିଜ ଛାତି ॥
ଭାଇ ବନ୍ଧୁ କେତେ    କାନ୍ଦୁଥିଲେ ସତେ
ନୟନୁ ଲୁହ ଗଡ଼ାଇ ॥

ଘରଥିଲା ତାହା    ଅଟେ ଏଣୁ ଦେଶ
କଷ୍ଟ ଘୁଞ୍ଚାଇବା ପାଇଁ ॥
ଲଢ଼ିବେ ମୋ ଭାଇ    ବନ୍ଧୁ ସବେ ମିଳି
ଏକାଠି ସଦାରେ ରହି ॥
ଦେଶର ଦଶର    ମଙ୍ଗଳ ହୋଇବ
ଦେଖିବେ ଅନ୍ୟାନ୍ୟ ଭାଇ ॥
ଭୋଗିଥିଲେ ଏକ    ଛେଷଠିଅ ଦୁର୍ଭିକ୍ଷ ॥
ଓମୋହର ଅଞ୍ଚଳ ଭାଇ ॥
ଘନ ଘନ ଦାବୀ    ପ୍ରତିକାର କର
ବଂଶଟେ ସୁବିଧା ପାଇ ॥
ଯେତେ କାମସବୁ    ବାକି ରହିଅଛି
ହେବ ସମ୍ପୂର୍ଣ୍ଣ ତାହାର ॥
କୁଳିଗିରି କରେ    ଖଟି ଦିନ ସାତ
ପାଇବେ ମୁଠେ ଆହାର ॥
ଛିଣ୍ଡ୍ରି ହୋଇଥିଲେ    ଶହ ଶହ ଅସି
ଭାଇମାନେ କେତେ ଦୁରୁଁ ॥
ଅସିଥିଲେ କେତେ    ନୟାଗଡ଼ ବାସୀ
ସ୍ନେହ ଦେଖାଇ ଅଗରୁ ॥
ଭଦ୍ରପୁର ହେଲେ    ଜୟନାଦ କରି
କମ୍ପିଲ ଗାଁ ପଞ୍ଚଭୂତ ॥
ବସି ଶୁଣୁଥିଲେ    ମୋ କହିବା କଥା
ପିଠିକୁ ଲଗାଇ ଘୃତ ॥

ଭଦ୍ରକ ମୁଁ ଯୁଦ୍ଧ ବରୁଢରେ ଯେଣୁ
ଗିରଫ କଲେ ପୁଲିସ ॥
ଜୟ ଜୟ ଧ୍ୱନି ଉଚ୍ଛୁଳି ଉଠିଲା
ଭଦ୍ରକ ସବୁ ନୀରସ ॥
ଆଣିଲେ ଶଗଡେ ପୁଣି ଗ୍ରାମ ବାଟେ
ପଞ୍ଚଭୂତଠାରୁ ମଡେ ॥
ଦୋଷିଙ୍କୁ ଦେଖିଲ ସମସ୍ତଙ୍କ ମନେ
ବିଷାଦର ଘୃଣା ସନ୍ତେ ।
ସ୍ୱସ୍ତି ରଖାଇ ସକାଳୁ ଆଣିଲେ
ପୁଲିସ ମଡେ ସଙ୍ଗରେ ।
ନେଉଛନ୍ତି ଅବ! ଯମଦୂତ ମାନେ
ଭାବିଲ ଏହା ମନେରେ ।
ଭେଟିଲ ବାଟରେ ପୂଜ୍ୟ ସମ୍ବାଦପତ୍ର
ପ୍ରାଣ କୃଷ୍ଣ ପ୍ରତିହାର ॥
ଅଶେଷ ଉତ୍ସାହ ଢ଼ାଳିଗଲେ ମନେ
ସବୁ କଥା ଶୁଣିସାର ॥
ଶୁଣିଲ ତାଙ୍କଠୁ ବୀର ସୁବାସଜୀ
ହୋଇଛନ୍ତି ନିରୁଦ୍ଦିଷ୍ଟ ॥
ଦେଶ ମାତୃକାର ଉଦ୍ଧାର ଆଶିରେ
ବାନ୍ଧି ନେଲେ ନିଜ ବାଟ ॥
ହବୁଛି ଏଥର ଖୋଲିବକି ଆଖି
ଇଂରେଜ ସର୍କାରଙ୍କର ।

ମହାତ୍ମା ଗାନ୍ଧିଙ୍କ　　ଅହିଂସା ସମର
(ତାଙ୍କୁ) କରିଦେଲ ଘୁଷଖୋର ।
ବଗୁର ହୋଇଲି　　ରସଲ କୋର୍ଟରେ
ହୋଇଲି ମୁଁ ଅପରାଧୀ ।।
ସେହି ଦୋଷ ପାଇଁ　　ଗୁଣ ମାସ ଜେଲ
ଭୋଗିବି ମୁହିଁ ଅବଧି ।।
କାନରୁ କାନକୁ　　ଏ ଖବର ବେଗେ
ହେବ ଚୌଦିଗେ ପ୍ରଚାର ।।
ଦୁଃଖରେ ମରିବେ　　ଜେଜେ ଭାଇ ବନ୍ଧୁ
କର୍ଣ୍ଣେ ଶୁଣି ଏ ଖବର ।।
କରିଲକି ଦୁଃଖ　　ଭାଇ ବନ୍ଧୁ ମୋର
ଛଇଲ ଖବର ଶୁଣି ।।
ସ୍ଥାନ ଦିଅ କପାଁ　　ଦୁଃଖକୁ ହୃଦୟେ
ଆଗୁଁ ଏହା ଥିଲି ଜାଣି ।।
ଚଲଣିତ ଗୁଲ　　ଏକ ମାସକାଳ
ଆଉ ଅଛି ତିନି ମାସ ।।
କାଲପର ଯାଇ　　ତୁମ୍ଭ ସଙ୍ଗେ ଭାଇ
ହେବ ମୋ ଦେଖା ସାକ୍ଷାତ ।।
ଯୋଗ ଦେବ ତୁମ୍ଭ　　କାର୍ଯ୍ୟରେ ଆନନ୍ଦ
( ଯାହା ) ଦେଶ କାମ କରୁ ଅଛ ।।
ଗରୀବ ମୂଲିଆ　　ଦଓଳ ଦ ଲୋକ
ପାଇବାକୁ ଯା' ଗହୁଛ ।।

ଘର ଦ୍ୱାର ଶଯ୍ୟା ସୁନ୍ତ ଗୁଣ୍ଡ ଆଜ୍ଞା
କେତେ ଭାଇ ବଦେଶରେ ॥
ପର ମୂଲ ଲଗି ଦୁଃଖ, କଷ୍ଟ ପଡ଼ି
ଛୋକେ ପିଇ ପ୍ରାଣ ଧରେ ॥
ଘର ପୋଡ଼ଠାରୁ ନାହିଁ ବଡ଼ ଦୁଃଖ
ଭୋଗନ୍ତି ଅଞ୍ଚଳବାସୀ ॥
ଧ୍ୱଂସ ହୋଇ ଯାଏ ଆଖି ପଲକରେ
ଧନ ଜନ ଗୋପ ଲକ୍ଷ୍ମୀ ॥
ଘର ପୋଡଠାରୁ ନାହିଁ ବଡ଼ଦୁଃଖ
ପୁତ୍ର ମୃତ୍ୟୁ ସଙ୍ଗେ ସମ ॥
ସର୍ବସ୍ୱାନ୍ତ ହୋଇ ଭୋଗନ୍ତି ଏ ଦଶା
ହୁଅନ୍ତି ଦାଣ୍ଡ ଭିକାରୀ ॥
ବହୁଚିନ୍ତା ଜର ହୋଇନାହିଁ ସ୍ଥିର
କାପର ପିବ ଏ ଦଶା ॥
ଗ୍ରୀଷ୍ମ ଆସିଲେ ମାଡ଼ିଆସେ ବେଗେ
ପ୍ରତିବର୍ଷ ଏ ଦୁର୍ଦ୍ଦଶା ॥
ବିଶ୍ୱନାଥ ସେବା— ସମିତି ଅମର
କର ପ୍ରତିକାର ଚିନ୍ତା ॥
ବୁଝାଇବ ନିଷ୍ଠେ ଗରିବଙ୍କ କଷ୍ଟ
ଅଗ୍ନି ଦେବଙ୍କ ଅତ୍ୟନ୍ତା ॥
ହୋଇବେ ମୁକତ ଏ ବନ୍ଦୀଶାଳରୁ
ତୁମର ସଙ୍ଗରେ ଭାଇ ॥

ମିଳି ମିଶି ସବୁ                    କାମରେ ତୁମକୁ
ସାହାଯ୍ୟ କରିବ ପାଇଁ ॥
ଡ଼ାକ ଥରେ ପାଇ                    ଜଗତ ନାଥଙ୍କୁ
ଘୁଞ୍ଚାଇବେ ଆମ ଦୁଃଖ ॥
ହୋଇବା ସ୍ୱାଧୀନ                    ଯିବ ପରାଧୀନ
ଦେଶେ ବସିଜିବ ସୁଖ ॥

( ଉତ୍କଳ ମଣି ଗୋପବନ୍ଧୁଙ୍କ ବନ୍ଦୀର ଆତ୍ମକଥା ଅବଲମ୍ବନରେ ଲିଖିତ )

— ୨ —

## ଜାଗରେ ଆଜି ଭାରତ ଜାତି



ଜାଗରେ ଆଜ ଭାରତ ଜାତି
ହିନ୍ଦୁ, ଖ୍ରୀଷ୍ଟ, ମୁସଲମାନ୍,
ଜନ୍ମଭୂମି ଅଜ ପାଇବ ମୁକତି
ଫେରିବ ପୂର୍ବ ସମ୍ମାନ - ୦ -
ଉଡ଼ାଇ କେତନ ବଜାଇ ଦୁନ୍ଦୁଭି
ଗାଅରେ ବିଜୟ ଗାନ,
କାରାବାସ ସୁଖ କରରେ ବରଣ,
ଗୃହଯାଉ ଏ ଜୀବନ । ୧ ।
ବାଜୁରେ ଶରୀରେ ଲଠିର ଅଘାତ
ଯାଉ ଫାଶୀଖମ୍ବେ ପ୍ରାଣ
ଜନ୍ମ ଭୂମିର ମୁକତି ସାଧନେ,
କର ଏକମନ ଧ୍ୟାନ । ୨ ।

ଜଗତରେ ଅହିଂସା ଶାନ୍ତି ମନ୍ତ୍ର ସାର
ସେନାପତି କଥା ଘେନ,
ହୁଅ ଅଗ୍ରସର ନ ଫେର ପଛକୁ,
କର ସାର ଏହି ପଣ ।୩।
ଫିଟିବ ବନ୍ଧନ ହୋଇବା ମୁକତି
ଜାଗ ଭାରତ ସନ୍ତାନ,
ଜଗତରେ ଆଜି ଭାରତ ଜାତି,
ହିନ୍ଦୁ, ଖ୍ରୀଷ୍ଟି, ମୁସଲମାନ୍ ।୪।

— ୦ —

## ବାଞ୍ଛା ଯଦି ହୋଇବୁ ଭବେ



ବାଞ୍ଛା ଯଦି ହୋଇବୁ ଭବେ
ନର ଜନ୍ମ ଏକା ନେବୁ ଆଣ,
ବୋଲିବାକୁ ସମସ୍ତ ମୋର
ଯାହା ଅଛି ଏହି ସଂସାର,
ପାପ ପୁଣ୍ୟ କିଛି ବିଚାର ନ କରି
ଛାଡ଼ିଧର୍ମ ଦେବୁ ଅଧର୍ମେ ମନ ।୧।
ଭାର୍ଯ୍ୟା, ପୁତ୍ର, ଦୁହିତା, ମାତା
ଭାଇ, ବନ୍ଧୁ, ଖୁଡୁତା, ପିତା
ଜେଇ ଧନ ପାଇଁ ତୁମ୍ଭଠାରେ ଭାଇ
ମୋର ମୋର ହେବେ ଲୋଭ କାରଣ ।୨।

ଜୀବଗଲେ ଗୁଣ୍ଡ ଟୋ କାୟା
ସବୁହୋଇ ଯିବେଟି ମାୟା,
ଗୋଟି ଗୋଟି ସବୁ ପଛକୁ ଖସିବେ,
କେହୁ ସଙ୍ଗରେ ନଯିବେଟି ଜାଣ ।୩।

ଧନ ଦଉଲତ ଅର୍ଜିବା
ବିପଦକୁ ବର ଅଣିବା
ସ୍ଥିର କରି ଦେଖ ଏହୁ ଦୁଇଟିରୁ,
କିଏ ବଡ଼ ଅଉ କିଏ ଶ୍ରେ ସ୍ଥାନ ।୪।

ସାଥୀ ସବୁ ସମ୍ପଦେ ଏକା
ବିପଦେ କେ ନଦେବେ ଦେଖା,
(ଆଜ) କେଉଁ କଥାପାଇଁ ଏହି ଭବେ ହଇ
ଭୁଲୁଛରେ ହୋଇବୁ ନର ଜନମ ।୫।

ଆତ୍ମା ଦେହୁ ଗଲେ ଅସନେ,
କାଳ ସେହୁ ଭକାଶ୍ୱ ପଶେ,
ବୁଲି ବାରମ୍ବାର ପେଟ ପୋଷିବାକୁ
ସାର ଛଟପଟ ହୋଇବା ପ୍ରାଣ ।୬।

ଦିନ ବଢ ଭେଟେ ସରିବ
ଖାଦ ଢଳେ କଷ୍ଟ ନ ଯିବ,
ଶେଷେ ବାୟ୍ୱା ହୋଇ କାୟାକୁ ହଜାଇ,
ସବୁ ସାରିବାକୁ ଧାଇଁବ ପ୍ରାଣ ।୭।

ପ୍ରାଣ ବନ୍ଧୁ ଜଗତ ନାଥ
ଭକ୍ତ ତାଙ୍କୁ ହେବୁ ମୁକତ
ସଂସାର ସାଗର ବଡ଼ ଭୟଙ୍କର
ତରିବା ଏଥିରୁ ବଡ଼ କଠିନ ।୮।

— o —

## ଗୋପବନ୍ଧୁ ସ୍ମୃତି



କାହିଁ ଯାଇ ସ୍ୱର୍ଗେ ରହୁ
କରିକି ଶୂନ୍ୟ ଉତ୍କଳ ଭୂଇଁ ହେ ଗୋପବନ୍ଧୁ !
କାଙ୍ଗାଳ ଓଡ଼ିଆ ପାଇଁ ।୧।

ଖରା ବର୍ଷା ଶୀତ ସହୁ
କେତେ ଦିନ ରାତି ଭାଇଙ୍କ ପାଇଁ ହେ ଗୋପବନ୍ଧୁ !
ଖିଆପିଆ ଜଳାଞ୍ଜଳି ଦେଇ ।୨।

ଗଲାଣି ପୂର୍ବ ବୈଭବ
ଗାଇ ବସିଲେ ଯା ଶେଷ ନୋହିବ ହେ ଗୋପବନ୍ଧୁ !
ଗାଇ ଲୁହ ଆଖିରୁ ଝରିବ ।୩।

ଚିନ୍ତା ନ ଛୁଟିବ ମନର
ଦେହ ଯାଇ ରହିଅଛି ଶରୀର ହେ ଗୋପବନ୍ଧୁ !
ଦଣ୍ଡ ଗଡ଼େ ଦୂର ବନ୍ଦୀଘର ।୪।

ଜଙ୍ଗଲର ଘରେ ଘରେ
ଉତ୍କଳ ଜାତୀୟ ଧ୍ୱଜା ଗର୍ବରେ ହେ ଗୋପବନ୍ଧୁ !
ଉଠେ ତବ ନାମ ପ୍ରଥମରେ । ୫ ।
ଚନ୍ଦ୍ର ଉଜ୍ଜ୍ୱଳାକାଶର
ଚୁଲ ଗଲି କରି ମନ୍ତ୍ର ଉଚ୍ଚାର ହେ ଗୋପବନ୍ଧୁ !
ଚନ୍ଦ୍ରୁ ପଲଙ୍କ ମାଡର । ୬ ।
ଛିନ୍ନଭିନ୍ନା ମାଢା ଦ୍ୱାରେ
ଛାଡ଼ି ସର୍ବ ସୁଖ ଲଭିଲ କେତେ ହେ ଗୋପବନ୍ଧୁ !
ଛାଡ଼ିଗଲ ନନେଇ ତା କେତେ । ୭ ।
ଜଡ଼ ଉଜଳ ଭୂଇଁରେ
ଜମାଟ ନଥିଲ ଭାଇ ଭାଇରେ ହେ ଗୋପବନ୍ଧୁ !
ଜାଗିଅଛୁ ତୁମ୍ଭ ପ୍ରଭାବରେ । ୮ ।
ଝରୁଛି ନେତ୍ର ଲୋତକ
ଝୁରି ଭାବ ତୁମ୍ଭ କାର୍ଯ୍ୟ କଳାପ ହେ ଗୋପବନ୍ଧୁ !
ଝିମିଃରେ ଯିବକି ଏ ଦୁଃଖ । ୯ ।
ନଥିଲେ ଉତ୍କଳେ କେହୁ
ନୂଆ ମନ୍ତ୍ର ତୁମ୍ଭେ ଦେଲ ମିଶାଇ ହେ ଗୋପବନ୍ଧୁ !
ନବଶକ୍ତି ଅସ୍ତ୍ର ଦେଲ କଢ଼ି । ୧୦ ।
ଟଳିବ କେବେ ଦର୍ପାର
ଟାଣ ପଣ କେବେ ଭାଙ୍ଗିବ ତା'ର ହେ ଗୋପବନ୍ଧୁ !
ଟେକ ରହିବ ଏ ଭାରତର । ୧୧ ।
ଠାକୁଆ ପ୍ରେମ ପର

ଠକ ପ୍ରବଞ୍ଚକ ଅଛନ୍ତି ଘେରି ହେ ଗୋପବନ୍ଧୁ !
ଠକି କଷ୍ଟାର୍ଜ୍ଜିତ ନ୍ୟନ୍ତି ମାରି । ୧୨ ।
ଡଙ୍ଗା ମଝି ଦରିଆରେ
ଡେରି ନ ହୋଇବ ଆଜ ଏଥିରେ ହେ ଗୋପବନ୍ଧୁ !
ଡାକି ଗାନ୍ଧି ବନ୍ଧୁ କଲେଣି ବାରେ । ୧୩ ।
ଢକା ବାଟେ ବୀର ମରେ
ଢାଳିବ କେ ରକ୍ତ ଜନନୀ ହିତେ ହେ ଗୋପବନ୍ଧୁ !
ଢାଳେ ଧାଇଁଅସ ବୀର ହେଉଚ । ୧୪ ।
ଅହିଂସା ଅସହଯୋଗେ
ଣଣ୍ଡାଭଣ୍ଡ ଆଜି ଉତ୍କଳ ଭାଗେ ହେ ଗୋପବନ୍ଧୁ !
ଅବଶ ତୁମ୍ଭ ପ୍ରଭାବେ । ୧୫ ।
ତଥି କିଏ ନେବ ବାହୁ
ତାରିବ ସଙ୍କଟୁ ଉତ୍କଳ ଭାଇ ହେ ଗୋପବନ୍ଧୁ !
ତୁମ୍ଭେ ଗଲ ଅନ୍ତର୍ଦ୍ଧାନ ହୋଇ । ୨୬ ।
ଥକ୍କା ହୋଇ ସର୍ବେ ରମି
ଥିର ଦୃଷ୍ଟି ତୁମ୍ଭ ଶତେ ନବେଶି ହେ ଗୋପବନ୍ଧୁ !
ଥପ୍ପ ଧର ହୃଅନ୍ତ ଆଶ୍ୱାସି । ୧୭ ।
ଦୁଃଖୀର ଦେଖିଲେ ଦୁଃଖ
ଦଣ୍ଡେ ସ୍ଥିର ନୋହୁ ଚିତ୍ତଜବ ସୁଖ ହେ ଗୋପବନ୍ଧୁ !
ଦେଉ ଦଣ ବାରେ ମାଗି ଭକ୍ତ । ୨୮ ।
ଧରି ହସ୍ତ ଭକ୍ଷା ଝୁଲି

ଧୀରେ ଗ୍ରାମେ ଗ୍ରାମେ କେ ଯିବ ବୁଲି ହେ ଗୋପବନ୍ଧୁ !
ଧରମ ଛତର ଖୋଲି । ୧୯ ।
ନିରନ୍ନ ଓଡ଼ିଶାବାସୀ

ନୀର ଢାଳୁଛନ୍ତି ନୀରବେ ବସି ହେ ଗୋପବନ୍ଧୁ !
ନଦେଖିଲ ଥରେ ଏବେ ଆସି । ୨୦ ।
ପରିଶ୍ରମ ଯାହା କରୁ

ପର ଆସି ନିଏ ତାହା ଆଗରୁ ହେ ଗୋପବନ୍ଧୁ !
ପେଟେ ପାଣି ଭରି ଦିନ ସାରୁ । ୨୧ ।
ଫିଟିବ କେବେ ବନ୍ଧନ

ଫୁଲିବ ଆନନ୍ଦେ ଭାଇଙ୍କ ପ୍ରାଣ ହେ ଗୋପବନ୍ଧୁ !
ଫେରିବକି ପୁରୁବ ସମ୍ମାନ । ୨୨ ।
ବନ୍ୟା ଦୁର୍ଭିକ୍ଷର ଦାଉ

ବକ୍ଷପାତି କେତେ ସହିବୁ ଆଉ ହେ ଗୋପବନ୍ଧୁ !
ବର୍ଷି ମାଡ଼ିଆସେ ଗୃହଁ ଗୃହ । ୨୩ ।
ଭାସିଯାଏ ଘର ଦ୍ୱାର

ଭାର୍ଯ୍ୟା ପୁତ୍ର କନ୍ୟା ବନ୍ଧୁ ସୋଦର ହେ ଗୋପବନ୍ଧୁ !
ଭକ୍ତି ଅଶ୍ରୁ କରି ତନୁବର । ୨୪ ।
ମହା ମାନବଙ୍କୁ ଅଣି

ମୃତ୍ୟୁମୁଖୀ ଓଡ଼ିଶାର କାହାଣୀ, ହେ ଗୋପବନ୍ଧୁ !
ମର୍ମେ ମର୍ମେ କେ ଯିବ ବଖାଣି । ୨୫ ।
ଯଶ ରଖି ମହୀତଳ

ଯିବ ବୋଲି ଗୃଲ ଚେତନ ଉଚ୍ଛୁଳ ହେ ଗୋପବନ୍ଧୁ !
ଜାଣିଥିଲ କିଏ ତୁମ୍ଭ ଖେଳ । ୨୬ ।
ରଖି ତୁମ୍ଭ ଶବ ଆଗେ

ରଚି ନାନା ପୂଜା ଉତ୍କଳ ମାନେ ହେ ଗୋପବନ୍ଧୁ !
ରଖ ଓଡ଼ିଆ ଟେକ ସବରେ । ୨୭ ।
ଲକ୍ଷ୍ମୀପୁତ୍ର ଓଡ଼ିଶାର

ଲୋଟୁ ଏ ମସ୍ତକ ତୁମ୍ଭ ପଦ୍ମର ହେ ଗୋପବନ୍ଧୁ !
ଲକ୍ଷ୍ୟ ରହୁ ତୁମ୍ଭର ପଥର । ୨୮ ।
ବାର୍ଷିକ ଶ୍ରାଦ୍ଧ ଦିବସେ

ବଳି ଆତ୍ମକଥା ଚାଇ ବରଷେ ହେ ଗୋପବନ୍ଧୁ !
ବନ୍ଧୁଥିବ ସାଙ୍ଗ ଦେବ ବେଶେ । ୨୯ ।
ଶିଶୁ ଆଜ ଓଡ଼ିଶାର

ଶାନ୍ତ ଯୁଦ୍ଧେ ବଳ ଦିଏ ଶ୍ରୀର ହେ ଗୋପବନ୍ଧୁ !
ଶଙ୍କା ଛେଦ ସାଜି ବୀର । ୩୦ ।
ଶୋଇଥିଲ ଏ ଓଡ଼ିଶା

ସଚେତ ଚେତାଲ ନିଦ୍ରା ସହସା ହେ ଗୋପବନ୍ଧୁ !
ସାରି ସକଳ ଦୁର୍ଦ୍ଦଶା । ୩୧ ।
ଷଡ଼ ନବମ ବରଷେ

ଷୋଡ଼ଶୋପଚାରେ ପୂଜା ହରଷେ ହେ ଗୋପବନ୍ଧୁ !
ଷଷ୍ଠ ଘଟିକା ଦିବସେ । ୩୨ ।
ହୋଇଲେ ପୁରୁଷ ମେଳ

ହସିବ ଆନନ୍ଦେ ମାତ ଉତ୍କଳ ହେ ଗୋପବନ୍ଧୁ !
ହେବ ଦୈନ୍ୟ ସର୍ବଦେଶ ନିର୍ମୂଳ । ୨୯ ।
ଛମାସ୍ୱାଶର ଶ୍ରୀହୃବ
ଭାଙ୍ଗିବେ ସକଳ ଦୁଃଖ ଅମୃତ ହେ ଗୋପବନ୍ଧୁ !
ଲୁପ୍ତ ନୋହିବ ଯଶ ତୁମ୍ଭର । ୩୦ ।

— o —

## କୃଷକ ଭାଇ

କହୁଛି ତୋ ହିତପାଇଁ

ଭାନଡ଼ର ଅପରେ ଶୁଣିବୁ ଭାଇ , କୃଷକ ଭାଇ
କଷ୍ଟ ତୋ ଦିବ ଉପେକ୍ଷ । ୧ ।
ଖରା, ବର୍ଷା, ଶୀତ ସହ
ଖଟୁ ଦିନରାତି ତୁ କାହା ପାଇଁ , କୃଷକ ଭାଇ
କ୍ଷଣେ ଅବସର ନାହିଁ । ୨ ।
ଗୋଟି ଗୋଟି କରି ଗୋର
ଗଣି ହେଉଅଛି ସମସ୍ତ ହାଡ଼ , କୃଷକ ଭାଇ
ଗୋଡ଼ ଭାଙ୍ଗିବାକୁ ନାହିଁ ବଳ । ୩ ।
ଘରେ ଯା ଖାଇବ ରଖୁ
ନେଇଯାଏ ଧନେ ଧନୀ ତାହାକୁ , କୃଷକ ଭାଇ
ଫାଟି ଯାଉଛି ତୋ ହୃଦୟକୁ । ୪ ।
ଉଡ଼ୁଲଣି ଦେଖି ଧ୍ୱଜା

ଜଗତେ ବାଜିଲାଣି ଜାତୀୟ ବାଜା          କୃଷକ ଭାଇ
ଉଠି ଆସ ହୋଇ କରି ତାଜା । ୫ ।
ଝୁହିଁ ଅଜ କେତେ ଦିନ
ଝୁମ୍ବୁ ବୁଡ଼ି ରହିଥିବୁ ମଉନ ,          କୃଷକ ଭାଇ
ଝୁହିଁ ଝୁହିଁ ଝୁଲିଯାଏ ଦିନ । ୬ ।
ଘୁଞ୍ଚ ତୁ ସକଳ ଆଶା
ଛଡ଼ାଇଅ ଅସି କରି ଭରଷା ,          କୃଷକ ଭାଇ
ଛୁଟିବରେ ଯିବ ତୋ ଦୁର୍ଦ୍ଦଶା । ୭ ।
ଜମିର ମାଲିକ ତୁହି
ଜମିଦାର କର୍ପାଫଳ ନାଇଁ ,          କୃଷକ ଭାଇ
ଜାଣି କେହି ତୁମ ଭାଗ ହୋଇ । ୮ ।
ଝୁରି ଝୁରି ପାଉ ଦୁଃଖ
ଝର ଝର ଝରେ ନେତ୍ର ଲୋତକ ,          କୃଷକ ଭାଇ
ଝାଉଁଳାଇଛି ତୋ ମୁଖ । ୯ ।
ନାହିଁ କେ ହେବ ତୋ ସାହା
ନଜ୍ଜରେ ଦୁଃଖେ ପଡ଼େ ତେ ଆହା ,          କୃଷକ ଭାଇ
ନିଜେ ଧୃଡ଼କର ନିଜ ବାହା । ୧୦ ।
ଟିକିଏ କଥାକୁ ଲାଗ
ଟାଣିଟୁଣି ତେଜବେ ଦେବେ ଟେ ଭାଗ ,          କୃଷକ ଭାଇ
ଟେକ ରଖ ନ୍ୟାଯ୍ୟ ବାଟେ ଯାଇ । ୧୧ ।
ଠକ, ଧନୀ, ସାହୁକାର

ଠକି ଭଣ୍ଡି ସବୁ ଖାଇଲେ ତୋର , କୃଷକ ଭାଇ
ଠିଅହେଲୁ ତୁ ବାନ୍ଧ ଦୁଆର । ୧୨ ।
ଡରନା କାହାକୁ ତୁହି
ଡରିଲେ ତୁ ଅଇ ବଞ୍ଚିବୁ ନାହିଁ , କୃଷକ ଭାଇ
ଡୁବିଯିବ ଡଙ୍ଗା ମଝି ନଈ । ୧୩ ।
ଢାଳ ତୁ ଦିଅ ରକତ
ଢାଳେ ତୋର ଯଶ ହେବ ବିଖ୍ୟାତ , କୃଷକ ଭାଇ
ଢଳ ଶୋଷକ ହେବେ ନିପାତ । ୧୪ ।
ଅରଟ ଚଳାଅ ଭାଇ
ଅନ୍ନ ବସ୍ତ୍ର କଷ୍ଟ ଦିଅ ତୁଟାଇ , କୃଷକ ଭାଇ
ଅନ୍ୟ ପାଇଁ ତୁ ନହୁଅ ବାଇ । ୧୫ ।
ତଥିର କରୁ କୋଚେଡ଼ା
ତୋହ ପାଇଁ ଧନେ ହୁଏ ତା ଲେଢ଼ା , କୃଷକ ଭାଇ
ତୋର ପିଠିରୁ କାଢ଼େ ଚମଡ଼ା । ୧୬ ।
ଥକ୍କା ହୋଇ ଗୃହେଁ ବସି
ଥିଲେ ଥୁଅ ଖାଦ୍ୟ ନେବ କେ ଅସି, କୃଷକ ଭାଇ
ଥିବ ତୋ ଭସ୍ମ ତଡେ ଗସି । ୧୭ ।
ଦାଉ ସାଧିବାକୁ ଭେଟେ
ଦେଖ ବସିଥାନ୍ତି ନ ଦଶେ ତୋତେ, କୃଷକ ଭାଇ
ଦୟା ଦେଖାଇଣ ଶତ୍ରେ । ୧୮ ।
ଧର ତୁ ସ୍ୱାଧୀନ ବାଟ

ଧୀରେ ଧୀରେ ଗୃହ ନୋହୁ ଛଡ଼ାଇ , କୃଷ୍ଣ କହ ଭାଇ
ଧନ୍ୟ ଧନ୍ୟ କହିବ ଜଗତ ।୧୯।
ନଗରେ ବସିଲେ ଭୃଙ୍ଗ,
ନ ଦେବ କେ ଆଣି ପେଟେ ପୂରାଇ, କୃଷ୍ଣ କହ ଭାଇ
ମାଆ ପିଲା ପାରିହେବ ଭାଇ ।୨୦।
ପେଟପୂରା ଦୁଇ ଓଳି,
ପାଇବାକୁ ସଦା ହେଉଛୁ ଝାଳି କୃଷ୍ଣ କହ ଭାଇ
ପରଘରେ ଦେଇ ସବୁ ଢାଳି ।୨୧।
ଫଟା କପାଳ ତୋହର
ଘାଣ୍ଟି ନପାଇ ଚହଟୁ ଶରୀର କୃଷ୍ଣ କହ ଭାଇ
ଫେରି ନ ଆସେ ସୁଖ ତୋହର ।୨୨।
ବନ୍ଦୋବସ୍ତ ଆସେ ଧାଇଁ
ବୁଝିବାକୁ ଅର୍ଥ ବାଟି ସେଥି, କୃଷ୍ଣ କହ ଭାଇ
ବନା ମେଘେ କୁଳୀଶ ପଡ଼ଇ ।୨୩।
ଭଗାରି ରୁ ସବୁଙ୍କର
ଭଣ୍ଡା ଭଣ୍ଡି ସବୁ ଖାଆନ୍ତି ତୋର କୃଷ୍ଣ କହ ଭାଇ
ଲାଜ ବସି ମୁଣ୍ଡେ ଦେଇ କର ।୨୪।
ମାଛି ମଶା ପରି ଭାବ
ମରନ୍ତି ତୋ ହାତ ଟେକ ହଲେ ନାହିଁ, କୃଷ୍ଣ କହ ଭାଇ
ମଶାଣିରେ ଅଛୁ ଥାନ ନାହିଁ ।୨୫।
ଯୁବତୀ ଝିଅକୁ ତୋର

ପଡ଼ିବନ ନୁହେଁ ବର୍ଷ ଅଠର      କୃଷକଭାଇ
    ଯେଣୁ ଶର ଅନାହାର      । ୨୬ ।
    ରଜା, ଧନୀ, ଜମିଦାର

ରକ୍ତ ମାଂସ ସବୁ ଶୋଷିଲେ ଚୋର,      କୃଷକଭାଇ
    ରହିଛି ଖାଲି ଶରୀର      । ୨୭ ।
    ଲକ୍ଷ ଲକ୍ଷ ତୋର ଭଇ      ·

କେଟି ପଡ଼ୁଛନ୍ତି ଖାଦ୍ୟ ନ ପାଇ      କୃଷକଭାଇ
    ଲୁହ ଯାଏ ନେଇ ବନ୍ଧୁ      । ୨୮ ।
    ବନ୍ୟା ଦୁର୍ଭିକ୍ଷ ଚୋହର

ବଳ ଚେଙ୍କ ସବୁ କଲଣି ଜୁର      କୃଷକଭାଇ
    ବଇର ତୁ ସବୁଙ୍କର      । ୨୯ ।
    ଶତ୍ରୁକୁ ସାଧିବା ପାଇଁ

ଶରୀରରେ ନବ ବଳ ସଂଚୁଇ      କୃଷକଭାଇ
    ଟଙ୍କା ତେଜ ଅସୁଧାଙ୍କି      । ୩୦ ।
    ସାହୁକାର, ସରକାର

ସହାରିବା ପାଇଁ ସଂକଳ୍ପ କର,      କୃଷକଭାଇ
    ସ୍ୱରାଜ୍ୟ ହେବ ସତ୍ୱର      । ୩୧ ।
    ଷଣ୍ଢ ତୁ ତୋହର ଦେଶେ

ଶଣ ପର କପାଁ ଲୁଚନ୍ତୁ ଗାଟେ,      କୃଷକଭାଇ
    ସବା ଶକ୍ତି ଆଣ ଶତ୍ରେ । ୩୨ ।
    ହସି ହସି ଦେଲେ ପ୍ରାଣ

ହୋଇଛୁ ଜଗତେ ଚିର ସ୍ମରଣ ,     କୃଷକ ଭାଇ
ହେଳ ନକର ଅସ ଭଜନ । ୩୩ ।
ଷଣ୍ଡେରୁ ନୋହୁ ଅଳସ
ଝର୍ଣ୍ଣିଯ୍ନ ପଡ଼ିଏ ଦେଖା ସାହସ ,     କୃଷକ ଭାଇ
ଷପ୍ନ ନୋହୁବ ତୋ ଯଶ । ୩ ।

— ୦ —

## କୃଷୀ ଭାଇ



କୃଷୀ ମଜୁରିଅ ଭାଇ
ଜାଗିବୁକି ଅବେ ତୋ ଓଡ଼ିଶ ପାଇଁ ହେ କୃଷୀଭାଇ
ଆଉ କେତେ ଦିନ ଥିବୁଶୋଇ । ୧ ।

ଖରା ବର୍ଷା ଶୀତ ସହୁ,
ମୁ ଣ୍ଡର ଝାଳକୁ ତୁଣ୍ଡେ ପୂରଇ ଓହେ କୃଷୀଭାଇ
ଏତେକଷ୍ଟ ସହୁ କାହାପାଇଁ । ୨ ।

ତୋହର ରକତ ପିଇ
ଜମିଦାର ଅଛୁ ମୋଟା ଦିଶଇ ହେ କୃଷୀଭାଇ
ରହେ ଛ'ତାଲ କୋଠାବନାଇଁ । ୩ ।

ଦେହେ ନାହିଁ ଖଣ୍ଡେ ଲନା
ପେଟକୁ ଓତାହର ନ ମିଳେ ଦାନା ହେ କୃଷୀଭାଇ
ସହୁ କା'ପାଇଁ ଏତେ ଗଞ୍ଜଣା । ୪ ।

ଯାହା ଭୁ ଆଦାୟ କରୁ
ପିତା'ଙ୍କ ମସ୍ତକ ଶୃଙ୍ଗ ନପାରୁ ହେ ଗୃଷୀବର
ନିଜ ପେଟକୁ ଅନାହାରେ ମରୁ । ୫ ।

ଘରେ ଯା ସ୍ୱାଇତ ରଖ
ଦିନେ ସାହୁକାର ନିଏ ତାହାକୁ ହେ ଗୃଷୀବର
ନାହିଁ ତୋ ଦୁଃଖ କେ ଶୁଣିବାକୁ । ୬ ।

ତୋହରି ଧନରେ ରଜା
ଖାଇ ପିଇ ଆଜ ମାରନ୍ତି ମଜା ହେ ଗୃଷୀବର
ବଜାଇ ଗୌରବ ବାଜା । ୭ ।

ଅନ୍ୟାୟ ରାଜତ୍ୱ ଭାଇ,
ପୃଥିବୀରେ ଆଜ ରହିବ ନାହିଁ ହେ ଗୃଷୀବର
ଭର ନ୍ୟାୟ ରାଜ୍ୟ'କୁ ଯଫାଇ । ୮ ।

ନ ପୋଷ ଏ ଜମିଦାର
ରଜା ସାହୁକାରଙ୍କ ଧନ-ସର୍କାର ହେ ଗୃଷୀବର
ଲଭିଯାଉ ଏ ନାମ ସତ୍ୱର । ୯ ।

ଛାଡ଼ିବ ବାଟକୁ ଭୁହ
ଖୋଲିବାକୁ ହେଉଲ ଚର୍ଖିଲ ଭାଇ ହେ ଗୃଷୀବର
ଶୀଘ୍ର ପାଇବୁ ଏଥିରୁ ସାହା । ୧୦ ।

ଜାତି, କୁବର୍ତ୍ତି, ଲଙ୍ଗଳ
ଦାଆ, କୋଡ଼ି, କୋଡ଼ୁ, ମୋଇ, ତୋଟୋଳା ହେ ଗୃଷୀବର
ଆର କିଛି ନ ତୋର ସମ୍ବଳ । ୧୧ ।

କଚଲ୍ ବୋଲ ଭୁଣ୍ଡରେ
ନ ଧର ଲଗିବ ପାପ ମୁଣ୍ଡରେ ହେ ଗୃଷୀଭାଇ
ଗାର କଣ ରଖ ହୃଦୟରେ । ୧୬ ।

ଏ ସବୁ ପାଳଲେ ତୁହୁ
ସ୍ୱାଧୀନ ହୋଇବୁ ଅଚଚରେ ଭାଇ ହେ ଗୃଷ ଭାଇ
ଦୁଃଖ ତୋ ଯିବ ଉଭେଇ । ୧୭ ।

କର ଭୂମି ଭଲ ଗୃଷ
ନେଶ୍ଣି ବ ତୋହର ସକଳ ଅଶା ହେ ଗୃଷୀଭାଇ
ଧ୍ୟାନ ଭର ସଦା ପରମେଶ । ୧୨ ।

ନ ଦଅ ଭାହାକୁ କର
ତୋର ଶ୍ରମ ଫଳ ତୁ ଭୋଗକର ହେ ଗୃଷୀଭାଇ
ଧ୍ୱଂସ ହେଉ ଏ ଧନୀ ସର୍କାର । ୧୩ ।

ଗ୍ରାମେ ପଞ୍ଚାୟତ ଗଢ଼ି
ନ୍ୟାୟ, ଅନ୍ୟାୟକୁ ସେଥିରେ ବାଛି ହେ ଗୃଷୀଭାଇ
ଅନ୍ୟାୟକୁ ଦଅ ତଡ଼ି । ୧୪ ।

— ୦ —

ସାରସ୍ୱତ ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍ ବ୍ରହ୍ମପୁର ଗଂଜାମ ୧୦୦୦ / ୬୮